# ପ୍ରେମ ପ୍ରହରିଣୀ

ଓ

# ରାମ ବିଳାପ

ନୂତନ ସଂସ୍କରଣ - ୨୦୧୩



## ଧର୍ମଗ୍ରନ୍ଥ ଷ୍ଟୋର

ପ୍ରକାଶକ ଓ ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର
ପ୍ରତିଷ୍ଠାତା - ଶ୍ରୀ ବିଦ୍ୟାଧର ସାହୁ
ପରିଚାଳକ : ଶ୍ରୀ ମହିମା ପ୍ରସାଦ ସାହୁ
ଅଲିଶା ବଜାର, କଟକ-୨
ଫୋନ୍ ନଂ- (୦୬୭୧) ୨୫୦୮୨୯୬

ମୂଲ୍ୟ - ଟ.୪.୦୦ (ଚାରି ଟଙ୍କା ମାତ୍ର)

# ହେମ ହରିଣୀ

## (ରାଗ ରାମକେରୀ)

ଶ୍ରୀରାମ ଘରଣୀ ବନରେ ଦେଖି ହେମ ହରିଣୀ
ସ୍ୱାମୀଙ୍କୁ ହରଷେ କହନ୍ତି ମୋତେ ଦିଅନ୍ତୁ ଆଣି ।
ସୀତା ବାଣୀ ଶୁଣି ଶ୍ରୀରାମ ଧନୁ ଶର ଧଇଲେ
ବୀର ଲକ୍ଷ୍ମଣଙ୍କୁ ଜଗାଇ ମୃଗ ପଛେ ଧାଇଁଲେ ।
ବହୁଦୂର ଯାଏଁ ଗୋଡ଼ାଇ ଗଲେ ଶ୍ରୀ ରଘୁରାଣ
ବାର ବାର ଶୁଭିଲା ତ୍ରାହି ତ୍ରାହି ବୋଲି ଲକ୍ଷ୍ମଣ ।
ରାମ କଣ୍ଠ ପରି ଡାକିଲା ଯହୁଁ ମାୟା ହରିଣୀ
ଉଛନ୍ନ ହୋଇ ଲକ୍ଷ୍ମଣଙ୍କୁ ସୀତା କହନ୍ତି ବାଣୀ ।
ଯାଅ ବାବୁ ଶୀଘ୍ର ବନକୁ କର ସ୍ୱାମୀଙ୍କୁ ରକ୍ଷା
ତୋ ବିନା କେ ଆଉ ଅଛିରେ ବନେ ହୋଇବ ସଖା ।
ଲକ୍ଷ୍ମଣ କହନ୍ତି ମାତ ଗୋ ତୁମ୍ଭେ ହେଲ କି ବାଇ
କ୍ଷତ୍ରୀକୂଳ ଶ୍ରେଷ୍ଠ ଅଟନ୍ତି ମୋର ଶ୍ରୀରାମ ଭାଇ ।
ତାହାଙ୍କୁ ବିପଦ ଦେବାକୁ ମର୍ତ୍ତ୍ୟେ କେ ହେବ ଜାତ
ହେବ ନାହିଁ ନର ଦେବତା ଅବା ଗନ୍ଧର୍ବ ଦୈତ୍ୟ ।
ସର୍ବ ଶୁଭେ ଫେରି ଆସିବେ ମୃଗେ ମାରି ମୋ ଭ୍ରାତ ।
କହୁଅଛି ମୁଁ ନ କର ସେଥିପାଇଁକି ଚିନ୍ତା ।
ଏହା ଶୁଣି ସୀତା ବିମନା ହୋଇ କହନ୍ତି ବାଣୀ
ଏଡ଼େ କପଟିଆ ଅଟୁ ତୁ ଏହା ନ ଥିଲି ଜାଣି ।
ଭାଇକି ମରାଇ ମୋତେ ତୁ ଭାର୍ଯ୍ୟା କରିବୁ ବୋଲି
ମନେ ଭାବିଅଛୁ ପାପିଷ୍ଠ ଏବେ ମୁହିଁ ଜାଣିଲି ।

କି ଅବା ତୁ ମୋତେ ନେଇଣ ଦେବୁ ଭରତ ପାଶେ
ସେ ମୋତେ ଭାରିଯା କରିବ ତାର ମନ ହରଷେ ।
ଜଣାଗଲା ସ୍ନେହ ତୋହରି ଆରେ ବୀର ଲକ୍ଷ୍ମଣ
ଆସିଥିଲୁ ବନେ ଗୋଡ଼ାଇ ନେବାକୁ ଆମ୍ଭ ପ୍ରାଣ ।
ଯାହା ଭାବିଅଛୁ ପାପିଷ୍ଠ ମନୁ ଦିନ ପାଶୋରି
ରାମ ବିନା ଅନ୍ୟ ପତି କେ ଜଣେ ନାହିଁ ମୋହରି ।
କାନ୍ଦି କାନ୍ଦି ବୀର ଲକ୍ଷ୍ମଣ କହୁଅଛନ୍ତି ବାଣୀ
କେଡ଼େ ପାପ କଥା ମୁଖରେ ଧରୁଅଛ ଜନନୀ ।
ତୁମେ ମୋର ମାତ ମୁଁ ତୁମ୍ଭ ଅଟେ ଅଯୋଧ୍ୟା ପୁଅ
ଦିନ ରାତି ପାଦେ ଖଟୁଛି ଯେଣୁ ଭୃତ୍ୟ ପରାୟ ।
ଭାଇଙ୍କ ଆଦେଶେ ମଢ଼ିଆ ଦ୍ୱାର ଜଗିଛି ମୁହିଁ
ଏକାକିନୀ କେହ୍ନେ ରହିବ ଯିବି ବନକୁ ଧାଇଁ ।
ଏ ବନେ ଅନେକ ଅସୁର କରିଅଛନ୍ତି ବାସ
ଏକା ଛାଡ଼ିବାକୁ ତୁମ୍ଭଙ୍କୁ ବଳୁ ନାହିଁ ସାହସ ।
ଲକ୍ଷ୍ମଣ କଥାକୁ ନବୁଝି କୋମଳୀ ବୈଦେହୀ
ଶୋକାକୁଳେ ସତୀ କାନ୍ଦନ୍ତି ନେତ୍ରୁ ନୀର ବୁହାଇ ।
ଦେଖି ଏ ବିକଳ କହନ୍ତି ବୀର ସୁମିତ୍ରା ସୁତ
ତୁମ୍ଭ ଆଜ୍ଞା ମାନି ଯାଉଛି ଆଉ ନ କାନ୍ଦ ମାତ ।
ମଢ଼ିଆ ଦୁଆରେ ତିନୋଟି ଗାର କାଟି ସୌମିତ୍ରି
କହିଲେ ଯଦି ସେ ଗାରକୁ ତୁମ୍ଭେ ଡେଇଁବ ସତୀ ।
ନିଶ୍ଚୟ ପଡ଼ିବ ବିପତ୍ତି ଜାଣିଥାଅ ବୈଦେହୀ
ଶୁଣିଥାଅ ମୋର ବଚନ ଯାହା କହୁଛି ମୁହିଁ ।
ସାକ୍ଷୀ ଥାଅ ଚନ୍ଦ୍ର ସୂର୍ଯ୍ୟ ହେ ନଦୀ ବନ ପର୍ବତ
ପଶୁ ପକ୍ଷୀ କୀଟ ପତଙ୍ଗ ସାକ୍ଷୀ ଥାଅ ତୁରିତ ।

ସୀତାଙ୍କ ଭର୍ତ୍ସନା ନ ସହି ବନେ ଯାଉଛି ମୁହିଁ
ସର୍ବେ ଶୁଣିଥାଅ ମୋ ଦୋଷ କେହି ଧରିବ ନାହିଁ ।
ଏହା କହି ଦୁଃଖେ ଚଳନ୍ତେ ବୀର ସୁମିତ୍ରା ସୁତ
ମାୟା ଯତି ବେଶେ ମିଳିଲା ଆସି ବିଶ୍ରବା ସୁତ ।
ଦଣ୍ଡ କମଣ୍ଡଳ ହସ୍ତରେ ଧରି ସେ ମାୟା ଯତି
ହରିନାମ ତୁଣ୍ଡେ ଘୋଷୁଛି ବୋଲି ହୋଇ ବିଭୂତି ।
ମଢ଼ିଆ ଦୁଆରେ ଥାଇଣ ଡ଼ାକେ ସେ ମାୟା ଯତି
କ୍ଷୁଧାରେ ମୋ ଚିତ୍ତ ଅସ୍ଥିର ଭିକ୍ଷା ଦିଅ ଗୋ ସତୀ ।
ନ ଦେଲେ ଏକ୍ଷଣି ମୋହର ନିଶ୍ଚେ ଯିବ ଜୀବନ ।
ପୁତ୍ର ହତ୍ୟା ଦୋଷ ଲଭିବୁ ଜାଣ ନାରୀ ରତନ ।
କୁଟୀର ଭିତରୁ ଜାନକୀ ଭିକ୍ଷା ଦେଲେ ବଢ଼ାଇ
ରାବଣ କହଇ ସେପରି ଭିକ୍ଷା ମୁଁ ନିଏ ନାହିଁ ।
ବାହାରକୁ ଆସି ଯେବେ ତୁ ଭିକ୍ଷା ଦେବୁ ଗୋ ମୋତେ
ତେବେ ମୁଁ ତୋ ହସ୍ତୁ ଭିକ୍ଷାକୁ ନେବି ଆନନ୍ଦ ଚିତ୍ତେ ।
ଫେରିଣ ଯିବୁ ତୋ କୁଟୀରୁ ଜରି ଦେଲେ ତୁ ନାସ୍ତି
କାହିଁକି ଦାଣ୍ଡରେ ବସାଇ ମୋତେ ଦେଉଛୁ ଶାସ୍ତି ।
ନାରୀ ଜାତି ପାପ ପୁଣ୍ୟକୁ ନାହିଁ ତିଳେ ବିଚାର
ଦେଖୁ ଦେଖୁ ତୋର ନିକଟେ ପ୍ରାଣ ଯାଉଛି ମୋର ।
ଶୁଣି ସୀତା ସତୀ କହନ୍ତି ଶୁଣ ହେ ଯତୀବର
ତିନିଗାର କାଟି ଯାଉଛି ବନେ ଲକ୍ଷ୍ମଣ ବୀର ।
ସ୍ୱାମୀଦ୍ରୋହୀ ହେବି କିପରି ରାଣ ଗାରକୁ ଡେଇଁ
ଦୋଷ କ୍ଷମି ମୋର ନିଅନ୍ତୁ ଭିକ୍ଷା ତପି ଗୋସାଇଁ ।
ମାୟା ଯତି ବୋଲେ କି କଥା ଶୁଣାଇଲୁ ତୁ ମୋତେ
ଅତିଥି ସେବାରେ କେ ମୁଢ଼ ବାଧା ଦେଇଛି ତୋତେ ।

କହ ତୁ କାହାର ନନ୍ଦିନୀ ଅଟୁ କାହାର ବୋହୂ
କାହାର ଭାରିଯା ହୋଇଣ ବନେ ଏ କଷ୍ଟ ପାଉ ।
ବଇଦେହୀ ବୋଲେ ଶୁଣ ହେ ଯତି ମୋହର ବାଣୀ
ମୋର ନାମ ସୀତା ଜନକ ରାଜା ଝିଅ ମୁଁ ପୁଣି ।
ଦଶରଥଙ୍କର ବୋହୂ ମୁଁ ରାମଚନ୍ଦ୍ର ମୋ ବର
ଲକ୍ଷ୍ମଣ ଅଟଇ ଦେବର ସୁମିତ୍ରାଙ୍କ କୁମର ।
ପିତୃ ସତ୍ୟ ମାନି ଶ୍ରୀରାମ ଭାଇ ଭାରିଯା ଘେନି
ବନକୁ ଆସିଣ ରହିଛୁ ପୂର୍ଣ୍ଣ କୁଟୀର ତିନି ।
ମୃଗ ମାରି ଯାଇ ଅଛନ୍ତି ମୋର ଜୀବ ଜୀବନ
ଦେବର ଯାଇଛି ଏକ୍ଷଣି ନେବାପାଇଁ ସନ୍ଧାନ ।
ସୀତାଙ୍କ ବଚନେ ରାବଣ ହସି କହଇ ଧୀରେ
କି ସୁଖ ଲଭୁଛୁ ସୁନ୍ଦରୀ ରହି କୁଡ଼ିଆ ଘରେ ।
ରାଜ୍ୟଛଡ଼ା ରାମ ନାମକୁ ମୁଖେ ନ ଧର ଗୋରୀ
ଆସ ଆସ ନବ କିଶୋରୀ ହେବୁ ମୋ ମନହାରୀ ।
ମୁହିଁ ଅଟେ ଲଙ୍କା ରାଜନ ମୋର ନାମ ରାବଣ
ଶୁଦ୍ଧ ସ୍ୱୁବର୍ଣ୍ଣରେ ମୋ ଶକ୍ତି ହୋଇଅଛି ନିର୍ମାଣ ।
ଅପୂରୁବ କିଛି ମୋ ରାଜ୍ୟେ ନାହିଁ ଜାଣ ସୁନ୍ଦରୀ
ଅଇଶ୍ୱର୍ଯ୍ୟ ଭୋଗ କରିବୁ ସୁଖେ ଦିବା ଶର୍ବରୀ ।
ହୀରା ନୀଳ ମୋତି ମାଣିକ କେତେ ଖଞ୍ଜିବୁ ଅଙ୍ଗେ
ସୁବର୍ଣ୍ଣ ଖଟରେ ଶୋଇବୁ ତୁହି ମୋହର ସଙ୍ଗେ ।
ଦାସୀ ପରିବାରୀ ଖଟିବେ ମନ ଜାଣି ତୋ ପାଦେ
ଆସ ଆସ ରସ ରଙ୍ଗିନୀ ଯିବ ମନ ଆନନ୍ଦେ ।
ରାବଣର ବାକ୍ୟ କର୍ଣ୍ଣରେ ଭେଦିଲା ସୀତା ସତୀ
ଅଧର କାମୁଡ଼ି କହନ୍ତି ଆରେ କପଟୀ ଯତି ।

ବାମନ ହୋଇଣ ଚନ୍ଦ୍ରକୁ କିମ୍ପା ବଢ଼ାଉ କର
ଭଲ ଗତି ଥିଲେ ମୋ ପାଶୁ ବେଗେ ହୁଅ ଅନ୍ତର ।
ନୋହିଲେ ଭୋଗିବୁ ନିଶ୍ଚେ ତୁ ପ୍ରତିଫଳ ଏହାର
ମୋ ସ୍ୱାମୀ ଦେବର ଆସିଲେ ଯିବୁ ଯମ ନଗର ।
ସୀତା ବାଣୀ ଶୁଣି ରାବଣ କ୍ରୋଧେ ନିଶ ଆଉଁସି
ଶୂନ୍ୟକୁ ଚହାଁନ୍ତେ ପୁଷ୍ପକ ଯାନ ମିଳିଲା ଆସି ।
ସୀତାଙ୍କ ଡାହାଣ ହସ୍ତକୁ ଧରି ରାବଣ ଦୁଷ୍ଟ
ଆକାଶ ମାର୍ଗରେ ଚଳାଇ ରଥ ଗଲା ତୁରିତ ।
ଶୋକାତୁର ହୋଇ କାନ୍ଦନ୍ତି ରଥେ ଜନକ ସୁତା
କି ଦୁଃଖ ସତେ ତୁ ନ ଦେଲୁ ଆରେ ମନ୍ଦ ବିଧାତା ।
ସିଂହ ଘରଣୀକୁ ଶୃଗାଳ ଧରି ନେଉଛି ହରି
ସାକ୍ଷୀଥାଅ ବନ ପର୍ବତ ତରୁ ଲତା ଓ ଗିରି ।
ଦେଖୁଅଛ ପଶୁ ପକ୍ଷୀଏ ଦେବ ସ୍ୱାମୀଙ୍କ କହି
ସୀତା ହରି ନେଲା ରାବଣ ମୂର୍ଖ ହମିଦ କହି ।



# ରାମ ବିଳାପ

କରନ୍ତି କାରୁଣ୍ୟ ରାମ ଭୂମି-ସୁତା ପାଇଁ । କାହିଁ ଗଲୁ ପ୍ରିୟେ ମୋର ସଙ୍ଗ ଛାଡ଼ିଦେଇ । କ୍ଷୀଣୋଦରୀ ଗୋ । କ୍ଷିତି ମଧ୍ୟେ ତୁ ଅଟୁ ସୁନ୍ଦରୀ ଗୋ ।୧। କନକାଙ୍ଗୀ ହେମଗୋରୀ ଛାଡ଼ିଗଲୁ କାହିଁ । ଗୁଣ ଘୋଷି ଘୋଷି ମୋର ଦିନ ସରୁ ନାହିଁ । ଘନ କେଶୀ ଗୋ । ଘୋଟିଲା ଅନ୍ଧାର ଏବେ ଆସି ଗୋ ।୨। ଉଦୟ ଚନ୍ଦ୍ରମା ମୁଖ କେଣେ ଲୁଚାଇଲୁ । ଉଆଁସ ରଜନୀ ପ୍ରାୟ ଦିବା ନିଶି କଲୁ । ମନ ମୋର ଗୋ । ଚନ୍ଦ୍ରମୁଖ ନ ଦେଖି ଅସ୍ଥିର ଗୋ ।୩। ଛନ୍ଦ ବୋଲି ମୁଁ ମୁଢ଼ ସେ ଜାଣି ନ ପାରିଲି, ଛଇଳ ରାମାରତନ ମୃଗ ମାରିଗଲି । ଯୋଗେ କହି ଗୋ, ଜାଣି ମୋତେ ଦଣ୍ଡ ଦେଲା ସେହି ଗୋ ।୪। ଭାଳି ଭାଳି ପ୍ରାଣମୋର ହେଉଛି ଆକୁଳ । ଝଟତିରେ ଦେଖାଅ ତୋ ଶ୍ରୀମୁଖ କମଳ । ନ ଦେଖିଣ ଗୋ । ନିଶ୍ଚୟ ମୋର ଯିବ ଜୀବନ ଗୋ ଟାଣି ବିନ୍ଧିବାକୁ ଧନୁ ବଳ ହେଉ ନାହିଁ । ଟିକେ ଭଲା ଦେଖା ମୂର୍ଖ ତୁ ଚନ୍ଦ୍ରମା ମୁହିଁ, ଠାକୁରାଣୀ ଗୋ । ଠିକେ ତୁ ଏ ଦୁଃଖଦେଲୁ ଆଣି ଗୋ ।୬। ଡ଼ରି ରାତ୍ରେ କୁଣ୍ଢିଆଇ ଶୁଣି ଦୃକ୍ଷଧ୍ୱନି, ଡ଼ାଳିମ୍ବଦଶନି କାହା କୋଳରେ ଯାମିନୀ, ଢୁଳାଇବୁ ଗୋ । କିପରି ତୁ ମୋତେ ପାଶୋରିଲୁ ଗୋ ।୭। ଆହା ପ୍ରିୟସହି କେଣେ ଛାଡ଼ିଗଲୁ ମୋତେ । ଆକୁଳ ହେଉଛି ପ୍ରାଣ ନ ଦେଖିଣ ତୋତେ । ତୋହ ପାଇଁ ଗୋ । ପାଦ ମୋର କେଣେ ନ ଚଳଇ ଗୋ ।୮। ସ୍ଥାବର ଦେଖିଛ କି ନେତ୍ର-ପିତୁଳୀ ମୋର । ଥରେ ହେ ବାରତା କହ କଷ୍ଟ ଯାଉ ଦୂର, ଦୁଃଖ ସହିଁ ଗୋ । ଦୟା ନ କରୁଛ ମୋତେ

କେହି ଗୋ । ଧରଣୀକି ଚ୍ଛହିଁଣ ପୁଚ୍ଛନି ରଘୁବୀର । ଧରି କେହି ଘେନିଗଲା ଘରଣୀ ମୋହର । ନିର୍ଦ୍ଦୟତା ଗୋ । ନୋହି କହ କେଉଁଣେ ଗଲା ସୀତା ଗୋ । ପଡ଼ି ବିଧି ବିପାକେ ମୁଁ ଗଲି ମୃଗ ମାରି । ପଳାଇଲା କେହୁ ଘେନି ରନ୍ ଚ୍ଛେରି କରି । ଫଟା ଭାଗ୍ୟ ଯେ । ଫାନ୍ଦ ବିହି ଲେଖିଥିଲା ରାଗେ ଯେ । ବିକଳେ ଶ୍ରୀରାମ ଗୁଣି ବାରିଜାକ୍ଷୀ ଗୁଣ । ବାରେ ଦେଖା ପ୍ରିୟେ ତୋର କୋମଳ ଆନନ ଉର୍ମଗାତ୍ରୀ ଗୋ । ଭସାଇଲୁ ଦୁଃଖେ ଅମ୍ବୁପତି ଗୋ ।୧୦। ମରାଳ ମରାଳ ଗମନୀ ସୀତା କେଉଁଣେ ଗଲୁ ତୁହି, ମୋତେ କିମ୍ପା ସଙ୍ଗତେ ନ ନେଇ ପ୍ରିୟ ସହି । ଜଳଜାକ୍ଷୀ ଗୋ । ଜଳୁଛି ତନୁ ତୋତେ ନ ଦେଖି ଗୋ ।୧୦। ରାଜୀବ ଲୋଚନା ସୀତା କେହୁ ଘେନିଗଲା । ରାକ୍ଷସ କେ ଅବା ଆସି ଭୋଜନ ସାରିଲା । ଲୋଭ କଲା ଗୋ । ଲଲାଟେ ମୋ ଏହା ଲେଖା ଥିଲା ଗୋ ।୧୦। ବାୟ ପ୍ରାପ୍ତ ହୋଇ ରାମ ବନରେ ବୁଲନ୍ତି । ବାନ୍ଧବୀକି ଏ ବନରେ ଲୁଚିଛୁ ବୋଲନ୍ତି । ସୁକୁମାରୀ ଗୋ । ସତ୍ୟ କରି ଦେଲା ଦୂର କରି ଗୋ । ସିତବକ୍ରମୁଖୀ ସୀତା ତୁ ମୋହର ଜୀବନ । ସତେକି ଦେଖିବି ଆଉ ସେ ଚ୍ଛରୁ ଲେପନ । ସୁକୁମାରୀ ଗୋ । ସାରିଦେଲୁ ଜୀବନ ମୋହରି ଗୋ । ହା ହା ସୀତା ବୋଲି ରାମ ଧରାରେ ପଡ଼ିଲେ । ହୋଇ ଆକୁଳ ଲକ୍ଷ୍ମଣ ତୋଳି ପ୍ରବୋଧିଲେ । କ୍ଷିତିଈଶ ହେ । କ୍ଷମା କର ରାମକୃଷ୍ଣ ଦୋଷ ହେ ॥

-ସମାପ୍ତ-

